ISSN: 2456-9194, Vol. III, Issue. IV, March 2020

# ପ୍ରତ୍ୟୟ

(Journal of Odia Language, Culture and Science)

JournalHomepage:http://cphfs.in/research.php



# ଓଡ଼ିଆ ଧ୍ୱନିର ଗୁଣ

**ସଂଘମିତ୍ରା ବେହେରା**

ଆସିଷ୍ଟାଣ୍ଟ ପ୍ରଫେସର, ସ୍ନାତକୋତ୍ତର ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ,

ରେଭେନ୍‌ସା ବିଶ୍ୱବିଦ୍ୟାଳୟ, କଟକ

E-mail: sanghamitraoriya@gmail.com

***ସାରମର୍ମ :*** *ଧ୍ୱନି ହେଉଛି ମନୁଷ୍ୟ ସମାଜରେ କଥିତ (ବ୍ୟକ୍ତବାକ୍ )ର କ୍ଷୁଦ୍ରତମ ଏକକ । ମନୁଷ୍ୟ କ୍ଷେତ୍ରରେ ଏହା ଯେପରି ଅନୁଭବ୍ୟ ସେହିପରି ଭାବବିସ୍ତାରକ । ଧ୍ୱନିତତ୍ତ୍ୱବିତଙ୍କ ଦ୍ୱାରା ଧ୍ୱନିର ଗୁଣଗୁଡ଼ିକୁ ମୂଲ୍ୟାୟନ କରାଯାଇଛି । ଧ୍ୱନିର ଗୁଣକୁ ଧ୍ୱନିଦୈର୍ଘ୍ୟ (length of sound), ବଳାଘାତ( stress) ଓ ସ୍ୱରଲହର (intonation) ଆଦି ମାଧ୍ୟମରେ ଆଲୋଚନା କରାଯାଇଥାଏ । କଥିତ ଭାଷା ଓ ସଙ୍ଗୀତରେ ଏହାର ଆବଶ୍ୟକତା ଉପଲବ୍ଧି କରିହୁଏ । ତେଣୁ  କଥା ପ୍ରସଙ୍ଗରେ ବା କଥୋପକଥନରେ ଏହି ତିନିଗୁଣର ଅନୁଧ୍ୟାନ, ପର୍ଯ୍ୟାଲୋଚନା ଓ ପର୍ଯ୍ୟବେକ୍ଷଣ କରାଯାଇଥାଏ । ଏଥିପାଇଁ 'କାଇମୋଗ୍ରାମ ବା କିମୋଗ୍ରାମ' ଭଳି ଧ୍ୱନି ଯନ୍ତ୍ରର ସାହାଯ୍ୟ ନିଆଯାଇଥାଏ । ଆଲୋଚ୍ୟ ପ୍ରବନ୍ଧରେ ଧ୍ୱନିର ଉପରୋକ୍ତ ଗୁଣକୁ ଗ୍ରହଣ କରି, ଓଡ଼ିଆ ଭାଷାର ଧ୍ୱନିଗୁଣକୁ ଆଲୋଚନା କରାଯିବାର ପ୍ରୟାସ କରାଯାଇଅଛି ।*

*ପ୍ରମୁଖ ଶବ୍ଦାବଳୀ : ଧ୍ୱନିର ଦୈର୍ଘ୍ୟ, ବଳାଘାତ, ସ୍ୱରର ଲହର, କ୍ରୋନ୍ ଲାଙ୍ଗୁଏଜ୍ ।*

ମନୁଷ୍ୟ ଏକ ବିଚାରବୁଦ୍ଧିସଂପନ୍ନ ପ୍ରାଣୀ । ନିଜର ଅଭିବ୍ୟକ୍ତି ବା କଥୋପକଥନ ପ୍ରସଙ୍ଗରେ ଧ୍ୱନି ହେଉଛି ତାର ବ୍ୟକ୍ତବାକ୍ ର ମୁଖ୍ୟ ଆଧାର । ଏ କ୍ଷେତ୍ରରୁ କଥିତ ଭାଷାର ବ୍ୟବହାରିତାକୁ କେନ୍ଦ୍ର କରି ଧ୍ୱନିର ଗୁଣକୁ ଧ୍ୱନିଦୈର୍ଘ୍ୟ, ବଳାଘାତ ଓ ସ୍ୱରଲହରରେ ବିଚାର କରାଯାଇପାରେ ।

## I. ଧ୍ୱନିର ଦୈର୍ଘ୍ୟ ବା ଦୀର୍ଘତା

ଏହାକୁ ପ୍ରଥମେ ବିଚାରକୁ ନେଲେ ଦେଖାଯାଏ ଯେଉଁ ଧ୍ୱନିର ଉଚ୍ଚାରଣ ପାଇଁ ଯେତିକି ସମୟ ଲାଗେ. ସେହି ଧ୍ୱନିକୁ ସେତିକି ଦୀର୍ଘ ବୋଲି କୁହାଯାଏ । ଧ୍ୱନିର ଦୈର୍ଘ୍ୟ ବା ଦୀର୍ଘତା ସର୍ବଦା ଏକ ଆପେକ୍ଷିକ ବିଚାର । ଅର୍ଥାତ୍ ଯଦି କୌଣସି ଭାଷାରେ ହ୍ରସ୍ୱନ ଥାଏ, ତେବେ ସେଠି ଦୀର୍ଘତାର ପ୍ରଶ୍ନ ଉଠେନାହିଁ ।(୧) ଏହା ବ୍ୟତୀତ ହ୍ରସ୍ୱଧ୍ୱନି ଓ ଦୀର୍ଘଧ୍ୱନି ଏହାକୁ ନେଇ ମଧ୍ୟ କେବଳ ଧ୍ୱନିର ଦୈର୍ଘ୍ୟକୁ ପରିକଳ୍ପନା କରାଯାଏ ନାହିଁ । ଯେହେତୁ ଏହା କଥିତ ଭାଷା ଉପରେ ନିର୍ଭର କରିଥାଏ। ଓଡ଼ିଆ ଭାଷାରେ ' ି' (ଇକାର) 'ୀ ' (ଈକାର) ଉଚ୍ଚାରଣରେ କୌଣସି ତଫାତ୍ ଜଣାପଡେନାହିଁ। ଯଥା- ବହି ଓ ନଦୀ' ।

ଧ୍ୱନିମାନଙ୍କର ଦୈର୍ଘ୍ୟ ମୁଖ୍ୟତଃ ଧ୍ୱନିଗୁଡ଼ିକର ପ୍ରକୃତି ଏବଂ ସ୍ଥାନ ଉପରେ ନିର୍ଭର କରେ । ପ୍ରକୃତି ପୃଷ୍ଠରୁ ଧ୍ୱନିମାନଙ୍କର ଦୀର୍ଘତାକୁ ଏହିପରି ବିଚାର କରାଯାଇପାରେ ଯଥା- ସ୍ୱରଧ୍ୱନି ସବୁଠାରୁ ଦୀର୍ଘ । ଏହା ପରବର୍ତ୍ତୀ ଉଚ୍ଚାରଣକୁ କେନ୍ଦ୍ର କରି ସଂଘର୍ଷୀ, ପାର୍ଶ୍ୱିକ, ନାସିକ୍ୟ, ଲୋଡିତ, ସ୍ପର୍ଶୀ, ଉତକ୍ଷିପ୍ତ ବ୍ୟଞ୍ଜନକୁ ଅନ୍ତର୍ଭୁକ୍ତ କରାଯାଏ ।(୨) ଆହୁରି ସ୍ୱରଧ୍ୱନିରେ ସଂବୃତ ଓ ବଂବୃତକୁ କେନ୍ଦ୍ର କରି ବିଚାର କଲେ ସଂବୃତ ଧ୍ୱନିଗୁଡ଼ିକ ବିବୃତ ଧ୍ୱନିଠାରୁ ଦୀର୍ଘ ଅଟେ । ଉଦାହରଣ ସ୍ୱରୂପ - 'ଇଟା ଓ ଅଟା' 'ଇଟା'ରେ 'ଇ'ର ଦୀର୍ଘତା 'ଅଟା'ର 'ଅ'ଠାରୁ ଦୀର୍ଘ ଅଟେ । ସେହିପରି 'ଆକାଶ' ଶବ୍ଦର ଉଚ୍ଚାରଣ କଲାବେଳେ 'ଆ' ଯେତିକି ସେକେଣ୍ଡରେ ଉଚ୍ଚାରଣ ହେଉଛି 'କା'ଟି ତା'ଠାରୁ କମ୍ ସେକେଣ୍ଡରେ ଉଚ୍ଚାରଣ ହୋଇପାରୁଛି । ମାତ୍ର ସଂଘର୍ଷୀ 'ଶ' ଧ୍ୱନିଟି 'କା' ଧ୍ୱନିଠାରୁ ଅଧିକ ସେକେଣ୍ଡରେ ଉଚ୍ଚାରିତ ହୋଇପାରୁଛି (ଓଡ଼ିଆ ଉଚ୍ଚାରଣରେ 'ଶ/ସ'ର ପାର୍ଥକ୍ୟ ଜଣାପଡେ ନାହିଁ) । ଏହା ବ୍ୟତୀତ ଆଉ ଏକପ୍ରକାର ଉଦାହରଣ ଦିଆଯାଇପାରେ ।

ଯଥା-'ଅରମା' (ଅ-ର-ଅ-ନା-ୟ୍,ଆ) ଭାତ (ଭ୍-ଆ-ତ୍-ଅ)

ଉକ୍ତ ଶବ୍ଦ ଦୁଇଟିର 'ଅ' ଧ୍ୱନିର ଦୀର୍ଘତାକୁ ଆଲୋଚନା କଲେ ପ୍ରଥମ ଶବ୍ଦର ଆଦ୍ୟ 'ଅ' ଓ ଦ୍ୱିତୀୟ ଶବ୍ଦର ଶେଷ 'ଅ'ର ଉଚ୍ଚାରଣର ଦୀର୍ଘତା ସମାନ ନୁହେଁ । ଶବ୍ଦର ଆରମ୍ଭରେ ଥିବା 'ଅ'ଟି ଯେତିକି ଦୀର୍ଘ ଶବ୍ଦର ଶେଷରେ ଥିବା 'ଅ'ଟିର ଦୀର୍ଘତା ତା'ଠାରୁ କମ୍ ।

କେତେକ କ୍ଷେତ୍ରରେ ଧ୍ୱନିର ଦୀର୍ଘତା ବ୍ୟକ୍ତିର କଥୋପକଥନ ଉପରେ ନିର୍ଭର କରେ । କେତେକ ଲୋକ ଖୁବ୍ ଶୀଘ୍ର କଥା କହୁଥିବାବେଳେ କେତେକ ଧୀରେ ଧୀରେ କଥାବାର୍ତ୍ତା କରିଥାନ୍ତି । କ୍ଷିପ୍ର ଭାଷାଣରେ ଧ୍ୱନିର

ଦୈର୍ଘ୍ୟ ଯେତିକି ସଂକୁଚିତ ହୁଏ ଧୀର ଭାଷଣରେ ଧ୍ୱନିର ଦୈର୍ଘ୍ୟ ସେତିକି ଦୀର୍ଘ ହୁଏ । ଲୋକଙ୍କ ପରି ଭିନ୍ନ ଭିନ୍ନ ଜାତିର ମଧ୍ୟ ଧୀର ବା ଚଞ୍ଚଳ ସ୍ୱଭାବ ଦେଖାଯାଇଥାଏ । ଓଡ଼ିଶାର ଆଞ୍ଚଳିକତା କ୍ଷେତ୍ରରେ ଏହା ସ୍ପଷ୍ଟ ବିଚାରଯୋଗ୍ୟ । କାକଟପୁର ଲୋକଙ୍କ ଉଚ୍ଚାରଣ ଭଳି ପୁରୀର ଲୋକ ଉଚ୍ଚାରଣ କରନ୍ତି ନାହିଁ ବା ବାଲେଶ୍ୱର ଭଳି କଟକ ଲୋକଙ୍କ ଉଚ୍ଚାରଣ ଶୁଣାଯାଏ ନାହିଁ।

ଓଡ଼ିଆ ଭାଷାରେ ଦୀର୍ଘଧ୍ୱନି ଦୀର୍ଘତା ଦ୍ୱାରା ବଳାଘାତ ଓ ସ୍ୱରଲହରର ମଧ୍ୟ ବିଚାର କରାଯାଇଥାଏ । ବଳାଘାତ ଓ ସ୍ୱରଲହରରେ ଧ୍ୱନିର ଦୈର୍ଘ୍ୟ ବୃଦ୍ଧି ପାଇଥାଏ । ଉଦାହରଣ ସ୍ୱରୂପ- (କ) ତାର (ତା'ର), (ଖ) ମାର (ମା'ର), (ଗ) କଣ (କ'ଣ), ଇତ୍ୟାଦି । କଥନ ପ୍ରସଙ୍ଗରେ ଏଗୁଡ଼ିକ ସ୍ପଷ୍ଟ ବାରିହୋଇପଡେ । ଏଥିରେ ବଳାଘାତ ଓ ସ୍ୱରଲହରର ପ୍ରକ୍ରିୟା ଜଡ଼ିତ ଥିବାବେଳେ ଅର୍ଥର ମଧ୍ୟ ପରିବର୍ତ୍ତନ ଘଟିଥାଏ। ବନ୍ଧନୀଯୁକ୍ତ ଓ ବନ୍ଧନୀମୁକ୍ତ (କ), (ଖ), (ଗ)ଓ (ଘ) ଉଦାହରଣରୁ ଏହା ଜଣାଯାଇଥାଏ। ଧ୍ୱନିବିତ୍ମାନେ ଧ୍ୱନିଦୈର୍ଘ୍ୟକୁ (Chrone) ନାମରେ ଅଭିହିତ କରାଯାଇ ଯେଉଁ ଭାଷାମାନଙ୍କରେ ଦୈର୍ଘ୍ୟ ସାହାଯ୍ୟରେ ଅର୍ଥ ପାର୍ଥକ୍ୟ ଘଟେ, ସେମାନଙ୍କୁ Chrone Language ନାମରେ ଅଭିହିତ କରିଥାନ୍ତି । (୩) ଓଡ଼ିଆ ଭାଷାରେ ଏହାର ସଂଖ୍ୟା ସ୍ୱଳ୍ପ ।

ଧ୍ୱନି ଦୀର୍ଘତା କୌଣସି ଭାଷାରେ ସବୁବେଳେ ସମାନ ନୁହେଁ । ଏହା ପାର୍ଶ୍ୱବର୍ତ୍ତୀ ଧ୍ୱନି ଦ୍ୱାରା ପ୍ରଭାବିତ ହୋଇଥିବାରୁ ହ୍ରସ୍ୱ ବା ଦୀର୍ଘରେ ପରିବର୍ତ୍ତନ ଦେଖାଦିଏ । ଇଂରାଜୀରେ ଏହାର ମାପକୁ See, Seed ଓ Seen ରୁ ବିଚାର କରାଯିବା ଭଳି ଓଡ଼ିଆ ଭାଷାରେ ଆକାର, ଆକାଶ ଓ ଆକାଂକ୍ଷାକୁ ମଧ୍ୟ ଗ୍ରହଣ କରାଯାଇପାରେ । ତିନୋଟିର ଶେଷ ବର୍ଣ୍ଣରେ ଭିନ୍ନ ଭିନ୍ନ ରୂପ ଯାହା ଉଚ୍ଚାରଣ ସମୟରେ ସେମାନଙ୍କର ଦୀର୍ଘତା ଉପରେ ପ୍ରଭାବ ପକାଇଥାଏ । ତେଣୁ ସେମାନଙ୍କର ଉଚ୍ଚାରଣ ସମୟ ନିରୂପଣ କରାଗଲେ ତାହା ମଧ୍ୟ ଭିନ୍ନଭିନ୍ନ ହୋଇଥାଏ।

## II. ବଳାଘାତ

ବଳାଘାତ ସମ୍ପର୍କରେ କୁହାଯାଇପାରେ ଯେଉଁ ଜୋର/ବଳ/ଶକ୍ତି ସାହାଯ୍ୟରେ ଯେଉଁ ଧ୍ୱନି ବା ଅକ୍ଷର ଉଚ୍ଚାରିତ ହୁଏ, ତାହାକୁ ସ୍ୱରାଘାତ କୁହାଯାଏ । ଧ୍ୱନିବିଜ୍ଞାନୀ ଗୋଲୋକବିହାରୀ ଧଳ ଏହାକୁ ବଳାଘାତ ମଧ୍ୟ କହିଛନ୍ତି । ବଳାଘାତ ପାଇଁ ଫୁସଫୁସ୍ ଅଧିକ ବାୟୁ ବା ପ୍ରାଣଶକ୍ତି ଦେବାର ଆବଶ୍ୟକତା ରହିଛି । ଦୈନନ୍ଦିନ ଜୀବନରେ ଭାଷା ବ୍ୟବହାରବେଳେ ଆମେ ବଳାଘାତ ପ୍ରକାଶ ପାଇଁ ଶରୀରର ବିଭିନ୍ନ ଅଙ୍ଗପ୍ରତ୍ୟଙ୍ଗର ପ୍ରୟୋଗର ସହାୟତା ନେଇଥାଉ ଯେପରି ମୁଣ୍ଡ ହଲାଇବା, ହାତ ହଲାଇବା ବା ଆଖି ନଚେଇବା ଇତ୍ୟାଦି । ଏଗୁଡ଼ିକୁ ବାହ୍ୟ ବଳାଘାତ କୁହାଯାଇଥାଏ । ତନ୍ମଧ୍ୟରୁ କେତେକ ସ୍ୱାଭାବିକ ହୋଇଥିବାବେଳେ କେତେକ ଅସ୍ୱାଭାବିକ ମନେ ହୋଇଥାଏ । ଭାରତୀୟ ଧ୍ୱନିବିତ୍ମାନେ ଧ୍ୱନି ବିଚାରରେ ଉଦାତ୍ତ, ଅନୁଦାତ୍ତ ଓ ସୋରିତ୍ତ ଏହି ତିନିପ୍ରକାର ଉଚ୍ଚାରଣ ବିଧି ରହିଛି ବୋଲି ମତବ୍ୟକ୍ତ କରନ୍ତି । (ସଂଗୀତ କ୍ଷେତ୍ରରେ ଏହା ଗ୍ରହଣୀୟ) । ଉଦାତ୍ତରେ ଡାହାଣ ହାତକୁ ମୁଣ୍ଡ ଉପରେ ଦିଆଯାଇଥାଏ । ସେହିପରି ଅନୁଦାତ୍ତ ଓ ସୋରିତ୍ତରେ ଯଥାକ୍ରମେ ଛାତି ଓ କାନ ପାଖରେ ରଖିବାର ନିର୍ଦ୍ଦେଶ ରହିଛି । ହସ୍ତର ଏଭଳି କ୍ରିୟାକୁ ବାହ୍ୟ ବଳାଘାତର ଅନ୍ତର୍ଭୁକ୍ତ କରାଯାଇଥାଏ।

ବଳାଘାତର ପ୍ରୟୋଗ ପ୍ରାଚୀନ କାଳରୁ ରହିଛି । ଋକବେଦରେ ଏହାର ବ୍ୟବହାର ଅକ୍ଷର ଉପରେ (ା) ଓ ଅକ୍ଷର ତଳେ (-) ଦିଆଯାଉଥିଲା । ଉଦାହରଣ ସ୍ୱରୂପ -

'ସ୍ୱାଦିଷ୍ଟ'ୟ ମଦି'ଷ୍ଟୟା ପର୍ବସ୍ୱ ସୋମ
ଧାରାୟା ଇ'ନ୍ଦ୍ରାୟ ପାତ'ବ ସୁତଃ ।(୪)

ଏବେ ମଧ୍ୟ ସଂସ୍କୃତ ମତାଦି ଉଚ୍ଚାରଣର ଏହା ପରିଲକ୍ଷିତ ହୁଏ ।(୫) ଏଥିରେ ଅକ୍ଷର ଉପରେ ରହୁଥିବା ସଳଖ ରେଖାଖଣ୍ଡ ପ୍ରାୟକୁ ପ୍ରଧାନ ବଳାଘାତ ଓ ଅକ୍ଷର ତଳେ ଥିବା ରେଖାଖଣ୍ଡକୁ ଅପ୍ରଧାନ ବଳାଘାତ କୁହାଯାଉଥିଲା । ତେଣୁ ଭାରତୀୟମାନେ ଭାଷା କ୍ଷେତ୍ରରେ ବଳାଘାତ ପ୍ରୟୋଗରେ ଖୁବ୍ ସଚେତନ ଥିଲେ ।

ଓଡ଼ିଆରେ କଥିତ ଭାଷାରେ ବଳାଘାତର ପ୍ରାଧାନ୍ୟ ରହିଛି। ଏହାକୁ (') ଚିହ୍ନ ଦ୍ୱାରା ଚିହ୍ନିତ କରାଉଥିଲେ ମଧ୍ୟ ବ୍ୟାକରଣିକ ନିୟମାନୁଯାୟୀ ବିରାମ ଚିହ୍ନ ଭାବେ ଏହା ସ୍ୱର ଦୀର୍ଘତାରେ ଅନ୍ତର୍ଭୁକ୍ତ । ତେଣୁ ଏଠାରେ ସ୍ପଷ୍ଟ କରିଦିଆଯାଇପାରେ ସ୍ୱରଦୀର୍ଘତା ସହିତ ବଳାଘାତର ମଧ୍ୟ ପ୍ରଭାବ ରହିଛି । ଆମେ ନିତିଦିନିଆ ଜୀବନର ଅନେକ ଶବ୍ଦ ଉଚ୍ଚାରଣ କରୁ । କେତେକ ସାଧାରଣ ଓ ଅନ୍ୟ କେତେକ ବଳାଘାତଯୁକ୍ତ ଏବଂ ଏହାସହିତ ଅର୍ଥ ମଧ୍ୟ ପରିବର୍ତ୍ତନ ଘଟେ । ଏଠାରେ ତାହାକୁ ଦେଖାଇ ଦିଆଯାଇପାରେ। ଉଦାହରଣ ସ୍ୱରୂପ –

| ସାଧାରଣ ଶବ୍ଦାର୍ଥ | ବଳାଘାତ / ସ୍ୱରଘାତ ଶବ୍ଦ ଓ ଅର୍ଥ |
|---|---|
| ତାର (ବୈଦ୍ୟୁତିକରଣ) | ତା'ର (ନିର୍ଦ୍ଦିଷ୍ଟ ଜଣକର) |
| ମାର (ମାରିବା) | ମା'ର (ମାଆର) |
| କଣ (ଘରର କୋଣ) | କ'ଣ (ପ୍ରଶ୍ନ ଅର୍ଥରେ) |
| କାର (ଗାଡ଼ି ବିଶେଷ) | କା'ର(କାହାର ପ୍ରଶ୍ନ ଅର୍ଥରେ) |
| କାହାକୁ | କା'କୁ (ଅର୍ଥ ପରିବର୍ତ୍ତନ ନାହିଁ) |
| ଜାର (ବଡ଼ଡବା) | ଯା'ର (ଯାହାର) |
| ସାର (ରାସାୟନିକ ଦ୍ରବ୍ୟ) | ସା'ର (ମହାଶୟ) |
| ଆତ (ଫଳ ବିଶେଷ) | ଆ'ତ (ଡାକିବା ଅର୍ଥରେ) |
| ମର (ମରିବା) | ମ'ର (ମୋହର) |
| ଜାତ / ଯାତ (ଜନ୍ମ / ଯାତ୍ର) | ଯା'ତ (ଯିବା ଅର୍ଥରେ) |

ଏଠାରେ ଯଦି ଦେଖାଯାଏ, ଯେଉଁଠାରେ 'ଅ', 'ଆ', 'ହ'ର ପ୍ରଭାବ ରହିଛି ସେହିଠାରେ ମୁଖ୍ୟତଃ ସ୍ୱରଦୀର୍ଘତା ସହ ବଳାଘାତର ପ୍ରଭାବ ରହିଛି । ଯେଉଁ ଧ୍ୱନି ବଳାଘାତ ପ୍ରାପ୍ତ ହୁଏ।

ତାହା ପାର୍ଶ୍ୱବର୍ତ୍ତୀ ଧ୍ୱନି ଅପେକ୍ଷା ଅଧିକ ସ୍ପଷ୍ଟ ଶୁଣାଯାଏ ଏବଂ ତାହାକୁ ପ୍ରତ୍ୟକ୍ଷ ବଳାଘାତ କୁହାଯାଏ । ମାତ୍ର ଓଡ଼ିଆ ଭାଷାରେ ବଳାଘାତର ପ୍ରଭାବ ସ୍ପଷ୍ଟ ଶୁଣାଯାଏ ନାହିଁ । ଏ କ୍ଷେତ୍ରରେ ବକ୍ତାର ମାନସିକ କ୍ରିୟା ଓ କଥୋପକଥନ ପ୍ରସଙ୍ଗ ହିଁ ସହାୟ ହୁଏ। ଏଭଳି କ୍ଷେତ୍ରରେ ତାହା ବଳାଘାତ ଭାବେ ପରିଚିତ ହୁଏ। ଏଠାରେ ସ୍ୱରାଘାତ ବାସ୍ତବରେ ଏକ ଅପ୍ରତ୍ୟକ୍ଷ, ଆତ୍ମଅନୁଭୂତି ପ୍ରକ୍ରିୟା ଛଡ଼ା ଅନ୍ୟ କିଛି ନୁହେଁ । ବଳାଘାତ ପ୍ରୟୋଗରେ ଅର୍ଥ

ପରିବର୍ତ୍ତନ ଏ କ୍ଷେତ୍ରରେ କେତେକଠାରେ ପରିଲକ୍ଷିତ ହେଲାବେଳେ କେତେକ କ୍ଷେତ୍ରରେ ହୋଇପାରେ ନାହିଁ। ଏହା ମଧ୍ୟ ସତ୍ୟ ଯେ ବଳାଘାତର ବହୁଳ ପ୍ରଭାବ କଥିତ ଭାଷାରେ ହିଁ ପରିଲକ୍ଷିତ ହୁଏ ।

| ମାନକ ଭାଷା | କଥିତ ଭାଷା |
|---|---|
| କୁଆଡକୁ ଯିବୁ? | କା'ଡକୁ ଯିବୁ? |
| କେଉଁଠିକୁ ଯିବ? | କେ'ଠୁକୁ ଯିବ? |
| ତୁ ଖାଇବୁ | ତୁଇ ଖା'ବୁ ଇବୁ |
| ତୁ ପିଇବୁ | ତୁଇ ପି'ବୁ |
| କ'ଣ କରିବି କହ? | କ'ଣ କରବି କ'? |
| କ'ଣ କରିବା? | କି'ସ୍‌ଟା କର୍ବାର<br>(ଦକ୍ଷିଣ ଓଡ଼ିଶାର ଭାଷା) |
| ତୁ ଆସେ | ତୁ ଆ' |

ଏଠାରେ କୁହାଯାଇପାରେ, ଓଡ଼ିଆ ଭାଷାରେ ଶବ୍ଦ ଅପେକ୍ଷା ବାକ୍ୟ ବଳାଘାତର ପ୍ରୟୋଗ ଦେଖାଯାଏ । ଉଦାହରଣ ସ୍ୱରୂପ-

(କ) ତୁମେ କୋଣାର୍କ ଦେଖିଛ

(ଖ) ତୁମେ କୋଣାର୍କ ଦେଖିଛ?

(ଗ) ତୁମେ କୋଣାର୍କ ଦେଖିଛ!

ଏହି ପ୍ରସଙ୍ଗରେ ଜଣାଯାଏ ପ୍ରଶ୍ନସୂଚକ ଓ ବିସ୍ମୟ ବା ଆଶ୍ଚର୍ଯ୍ୟ ଭାବ ପ୍ରକାଶରେ ବଳାଘାତର ପ୍ରଭାବ ଖୁବ୍ ବେଶୀ ହୁଏ । କଥିତ ଓଡ଼ିଆ ଭାଷାର ଏକ ବଶେଷତ୍ୱ । ଏହାକୁ ଶ୍ରୋତା ଶୁଣିବା ପରେ ଅନୁମାନ କରିପାରେ ବକ୍ତା ପ୍ରଶ୍ନ କରୁଛନ୍ତି ନା ବିସ୍ମୟ ହେଉଛନ୍ତି । ସେହିଭଳି ସ୍ୱରାଘାତ ବ୍ୟକ୍ତିର ମାନସିକ ବିରକ୍ତି ବା ଶାନ୍ତି ବା ଆନନ୍ଦର ମଧ୍ୟ ପରିଚୟ ଦିଏ । ବିରକ୍ତି ଓ ଘୃଣାଜନିତ ପ୍ରସଙ୍ଗବେଳେ ଏହା ବଳାଘାତର ପ୍ରଭାବ ରହିଥାଏ । ବିରକ୍ତିରେ ରହିଥିବା ବ୍ୟକ୍ତିର ଖାଇବା ବିଷୟ ପଚାରିବାବେଳେ ସେ ବିବ୍ରତ ଥିବାବେଳେ ହଠାତ୍ ଯେଉଁ ଉତ୍ତରଟି ଦିଏ ସେଥିରେ ବଳାଘାତକୁ ଅନୁମାନ କରାଯାଇପାରେ । ତେଣୁ ବଳାଘାତର ପ୍ରଭାବ ବ୍ୟକ୍ତିର ଭାବ ପରିପ୍ରେକ୍ଷୀ ସହିତ ମଧ୍ୟ ଜଡ଼ିତ ଥାଏ । ଆଉ ଏକ ଉଦାହରଣରେ ଏହାର ସ୍ପଷ୍ଟୋକ୍ତି ଦେଖାଇ ଦିଆଯାଇପାରେ –

(କ) ମୁଁ ପାରିବିନି – (ନିଶ୍ଚିତ ନ ପାରିବା ଅର୍ଥରେ ସ୍ୱୀକାର)

(ଖ) ମୁଁ ପାରିବିନି – (କ୍ରୋଧରେ ପ୍ରକାଶବେଳେ ବଳାଘାତ ନିହିତ ଜାଣିବା ସତ୍ତ୍ୱେ ନ କହିବାର ଛଳନା)

(ଗ) ମୁଁ ପାରିବିନି – (ନିଜର ଅପରାଗମତାକୁ ସେ ପ୍ରକାଶ କରିବ ତ)

ସେହିପରି ଯୁକ୍ତ ବ୍ୟଞ୍ଜନମାନଙ୍କର ବଳାଘାତର ପ୍ରଭାବ ରହିଥାଏ । ଯଥା- ଶ୍ମଶାନ, ଶ୍ଳଥ, କ୍ଲିଷ୍ଟ, 'କର୍ଷଣ', 'ପ୍ରୟାଗ' ଇତ୍ୟାଦି ।

ବାସ୍ତବରେ ବଳାଘାତ ଆମର କହିବା ପ୍ରସଙ୍ଗରେ ସର୍ବଦା ନିହିତ ରହିଥାଏ । ଯେଉଁ ସମୟରେ ଆମେ କିଛି କହିଥାଉ ଏହା ଉଭୟ ବାହ୍ୟ ବଳାଘାତ ଓ ଆଭ୍ୟନ୍ତରୀଣ ବଳାଘାତ ଭାବରେ ଆପେ ଆପେ ସଂଗଠିତ ହୋଇଥାଏ । ଏହାକୁ ବକ୍ତା ଜାଣିଶୁଣି କରେନାହିଁ ।

### III. ସ୍ୱରଲହର

ସ୍ୱରଲହର କହିବାର ଭଙ୍ଗୀ ଉପରେ ନିର୍ଭର କରେ । ଓଡ଼ିଆରେ ଏକ ପ୍ରମାଦ ଅଛି "କହି ଜାଣିଲେ କଥା ସୁନ୍ଦର, ବାନ୍ଧି ଜାଣିଲେ ମଥା ସୁନ୍ଦର ।" ଏହି କହି ଜାଣିଲେ କଥା ସୁନ୍ଦର ମର୍ମଟିକୁ ସୂକ୍ଷ୍ମ ଦିଗରୁ ବିଚାର କଲେ ସ୍ୱରଲହର ଏଥିପାଇଁ ଗୁରୁତ୍ୱପୂର୍ଣ୍ଣ ଅଟେ । କାହାର କହିବାଭଙ୍ଗୀ କର୍କଷ ଥିବାବେଳେ କାହାର ଖୁବ୍ ମଧୁର । ସେହି କ୍ରମ ଉପରେ ସ୍ୱରର ଉତ୍ଥାନପତନ ମଧ୍ୟ ହୋଇଥାଏ । ଅନେକ ସମୟରେ ଆମେ କାହାରି କଥାଶୁଣି କହିଥାଉ, ସେ ଯାଜପୁରିଆ ବା ସେ କଟକିଆ ବା ବାଲେଶ୍ୱରିଆ । ଏଭଳି କଥାନଭଙ୍ଗୀରୁ ଆଞ୍ଚଳିକତାକୁ ବାରି ନେବା ସ୍ୱରଲହରର ହିଁ ସହାୟ ହୋଇଥାଏ । ପଶ୍ଚିମାଞ୍ଚଳରେ ଏକପ୍ରକାର କଥିତ ଭାଷାର ପ୍ରଚଳନ ଅଛି, ଯାହାକୁ 'ଲଥିଆ' ଭାଷା କୁହାଯାଏ । ଲହରେଇ କୁହାଯାଇପାରୁଥିବାରୁ ଏହାକୁ ଲଥିଆ କୁହାଯାଏ । ତେଣୁ ଆମର ଆଞ୍ଚଳିକ କଥିତ ଭାଷାର ମାନ ଧ୍ୱନିଦୀର୍ଘତା, ବଳାଘାତ ପରି ସ୍ୱରଲହରର ଉପରେ ମଧ୍ୟ ନିର୍ଭର କରିଥାଏ । ସ୍ୱରଲହରର ମାପ ପାଇଁ 'କିମୋଗ୍ରାମ ବା କାଇମୋଗ୍ରାମ୍'ର ସାହାଯ୍ୟ ନିଆଯାଏ । ଏହାଦ୍ୱାରା କଥା କହିବାବେଳେ ସ୍ୱର କେତେ ପରିମାଣରେ ଉତ୍ଥାନ ବା କେତେ ପରିମାଣରେ ପତନ ହେଉଛି, ତାହା ସହଜରେ ଜଣାଯାଏ । ଓଡ଼ିଆରେ 'ପ୍ରଶ୍ନମୂଳକ ଓ ବିସ୍ମୟବାଚକ' ବାକ୍ୟରେ ସ୍ୱରଲହରର କାର୍ଯ୍ୟ କରିଥାଏ । ତେଣୁ କଥା କହିବାବେଳେ ଶ୍ରୋତା ବକ୍ତାର ପ୍ରସଙ୍ଗକୁ ସହଜରେ ଜାଣିପାରିଥାଏ । ସ୍ୱରଲହରରୁ ବ୍ୟକ୍ତିର କ୍ରୋଧ, ଶାନ୍ତ, ଇଚ୍ଛା ଆଦି ରହିଛି । ଆଦି ଭାବରେ ସହଜରେ ପ୍ରକାଶ ପାଇଥାଏ । ନିମ୍ନରେ ସ୍ୱରଲହରକୁ ନିତିଦିନିଆ କଥାବାର୍ତ୍ତା ପ୍ରସଙ୍ଗରେ ଆଲୋଚନା କରାଯାଇପାରେ । ଉଦାହରଣ ସ୍ୱରୂପ-

(କ) ତୁମ ଭାଇ କଟକ ଯାଉଛନ୍ତି?

(ଖ) ତୁମ ଭାଇ କଟକ ଯାଉଛନ୍ତି ।

ଏଥିରେ ଉଭୟ ବାକ୍ୟରେ କହିବାବେଳେ ଲହର ପ୍ରକ୍ରିୟା ଭିନ୍ନ ଭିନ୍ନ ଥାଏ । ଆଉ ଏକ କଥୋପକଥନରେ ଲହର ପ୍ରକ୍ରିୟାକୁ ଦର୍ଶାଯାଇପାରେ –

(କ) ସେ ଚାଲିଗଲେଣି ମ ।

(ଖ) ହଁ, କେବେ?

(ଗ) ଜାଣି ନାହିଁ ତ!

ବକ୍ତାର ଏହି କଥା ପ୍ରସଙ୍ଗେରେ ତା'ର ଲହର ସମାନ ବା ଏକ ନିର୍ଦ୍ଦିଷ୍ଟ ଧାରାରେ ନଥାଏ । କେତେବେଳେ ଉଚ୍ଚକୁ ଉଠେ ତ ପୁଣି କହିବାବେଳେ ଲହର କେତେବେଳେ ନିମ୍ନକୁ ଖସିଥାଏ।

ଶେଷରେ ଏତିକି କୁହାଯାଇପାରେ କଥା କହିବାବେଳେ ଆମ କଥୋପକଥନରେ ଧ୍ୱନି ଦୀର୍ଘତା ବଳାଘାତ ଓ ସ୍ୱରଲହରର ପ୍ରଭାବ ଏଭଳି ସଂଶ୍ଳିଷ୍ଟ ଥାଏ ଯେ, ଗୋଟିଏକୁ ଅନ୍ୟ ବ୍ୟତୀତ ଉଚ୍ଚାରଣ କରାଯାଇପାରେ ନାହିଁ । ଧ୍ୱନିର ଏହି ଗୁଣତ୍ରୟୀ ପରସ୍ପର ପରିପୂରକ।

### ସହାୟକ ଗ୍ରନ୍ଥସୂଚୀ


୧. ଧଳ ଗୋଲୋକ ବିହାରୀ : ଧ୍ୱନିବିଜ୍ଞାନ, ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ସଂସ୍ଥା, ଭୁବନେଶ୍ୱର, ୫ମ ସଂସ୍କରଣ-୨୦୦୧, ପୃ.୧୮୨

୨. ଧଳ ଗୋଲୋକ ବିହାରୀ : ଧ୍ୱନିବିଜ୍ଞାନ, ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ସଂସ୍ଥା, ଭୁବନେଶ୍ୱର, ୫ମ ସଂସ୍କରଣ-୨୦୦୧, ପୃ.୧୮୩

୩. ଧଳ ଗୋଲୋକ ବିହାରୀ : ଧ୍ୱନିବିଜ୍ଞାନ, ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ସଂସ୍ଥା, ଭୁବନେଶ୍ୱର, ୫ମ ସଂସ୍କରଣ-୨୦୦୧, ପୃ.୧୮୫
୪. ଧଳ ଗୋଲୋକ ବିହାରୀ : ଧ୍ୱନିବିଜ୍ଞାନ, ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ସଂସ୍ଥା, ଭୁବନେଶ୍ୱର, ୫ମ ସଂସ୍କରଣ-୨୦୦୧, ପୃ.୧୯୨
୫. ଓଁ ସହାଦେବ୍ୟୈ ଚ' ବିଦ୍ମହେ' ବ୍ରହ୍ମପତ୍ନୀ ଚ' ଧମୀ ହି । ତନ୍ନୋ ବାଣୀ ପ୍ରଚୋଦୟାତ୍ ।
ଓଁ ହଂସ ହଂସାୟ ବ୍ରିଦ୍ମହେ' ପରମହଂସାୟ' ଧୀମହି । ତମ୍ନୋ ହଂସଃ ପ୍ରଚୋଦୟାତ୍ ।
ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ (www.odia-org- ଶ୍ରୀସରସ୍ୱତୀ ସ୍ତୁତି, ପୃ.୧୫)